# ଜହ୍ନମାମୁଁ ।

୨ ୟ ସଂସ୍କରଣ ।

ବାମଣ୍ଡାଧିପତି ସୁବଳଦେବଙ୍କ ଦ୍ୱାରା

ସଂକଳିତ ।

ବିଷ୍ଣୁ ଯେଉଁହନ୍ତି ଜଗତପିତା ,
ସେହେତୁ ଲକ୍ଷ୍ମୀ ହେଲେ ଲୋକମାତା ;
ତାଙ୍କ ଭାଇ ହୋଇ ଚନ୍ଦ୍ର, ଜନମୁଁ ,
ଜଗତରେ ଖ୍ୟାତ ସେ ଜନମାମୁଁ ।
ଅପଭ୍ରଂଶକଲେ ,
ଜହ୍ନମାମୁଁ ବୋଲି ଅଜ୍ଞାନି ପିଲେ ।

ବାମଣ୍ଡା ଜଗନ୍ନାଥ ବଲ୍ଲଭ ପ୍ରେସରେ ମୁଦ୍ରିତ ।

ସନ ୧୯୦୩ ଇଃ

# ବାତ୍ସଲ୍ୟ ପହାର ।

ଶ୍ରୀ ମହାରାଜ କୃପାମୟ ଅନଙ୍ଗଭୀମ କେଶରୀଦେବ ଗଜପତି
ବୃହତ୍ କ୍ଷେମୁଣ୍ଡୀଶ୍ୱର କରକମଳେଷୁ ।

( କୃଷ୍ଣସିଂହ ମହାଭାରତର ବାତ୍ସଲ୍ୟ ବୃତ୍ତ )

ଗରୁଡ ଧ୍ୱଜଙ୍କର    ପାଦ ନିର୍ଝରିଣୀ
ଆମ୍ଭର ଗଙ୍ଗବଂଶ    ତହିଁର କରଣୀ । ୧ ।
ତୁମ୍ଭେ ସେହି ଗଙ୍ଗ— ବଂଶ ରତ୍ନାଙ୍କୁର ,
ଉତ୍କଳ-ଜନନୀର    ସୁଯୋଗ୍ୟ କୁମର । ୨ ।
କିଶୋର ପ୍ରବାହରେ    ସୌଜନ୍ୟ ଉର୍ମିମାଳା ,
ଖେଳାଇହୋଇଅଛି    ସୁମନ ଗଳାମାଳା । ୩ ।
ଅମର ପୁର ଶିରୀ    ହାତରେ ଥିଲେ ଧରି ,
ତଥାପି କଥା ରତ୍ନ    ତୁମ୍ଭର ହେବ ଗୌର । ୪ ।
ଯେତେ ତୁମ୍ଭ ଚରିତ,    ହେଉଅଛି ଗଣି ,
ଲଭୁଛି ଠାବେଠାବେ    ଗଉରବ ମଣି । ୫ ।
ବାତ୍ସଲ୍ୟ-ପାରାବାର    ଲହରୀ କରଢେଙ୍କ ,
ରହିଛି ଚୁମ୍ବିବାକୁ    ଶ୍ରୀମୁଖ-ଶଶିଙ୍କ । ୬ ।
ଗୋଟିଏ ପଦାର୍ଥକୁ    ନାନା ରୂପ କରି ।
ଚତୁର ଥାନ୍ତୁ କବି    ଚମତ୍କାର ଧରି । ୭ ।
ସରସ୍ୱତୀ ଭଣ୍ଡାର    ନୁହେଁତ କେବେ ଖାଲି,
ସାହିତ୍ୟର ସୀମାକୁ    ଯିବ କିଏ ଚାଲି । ୮ ।

ତଥାପି ବାମଣ୍ଡାର   ସାହିତ୍ୟ ସେବୀ ଗଣ ,
ଚନ୍ଦ୍ରକୁ ଚନ୍ଦି ଗଲେ   ଦେଇ ଆଭରଣ । ୯ ।
ତାହାମୂଁ ଠୁଳକରି   ଉତ୍କଳ ସାହିତ୍ୟ ,
ଭଣ୍ଡାରେ ରଖିବାକୁ   ବଳଇଲା ଚିତ୍ତ ॥ ୧୦ ॥
ପିଲାମାନଙ୍କର   ଶ୍ରଦ୍ଧା ସମ୍ପାଦନ ,
କରନ୍ତୁ ଜନ୍ମମାନ୍   ଦେଖାଇ ସର୍ବଜନ । ୧୧ ।
ଆହେ ବାପଧନ   ତୁମ୍ଭର ଶ୍ରୀହସ୍ତରେ ,
ଜନ୍ମମାନ୍ ପୁସ୍ତକ   ଦେଲି ମୁଁ ଶ୍ରଦ୍ଧାଭରେ । ୧୨ ।

ସଂଗ୍ରାହକ

ଶ୍ରୀ ବାମଣ୍ଡା ଧିପତି ସୁଢ଼ଳଦେବ ।

---



# ପୁସ୍ତକାନ୍ତର୍ଗତ ପଦ୍ୟରଚକମାନଙ୍କର ନାମ ଓ
## ତଦୀୟ ପଦ୍ୟର ଅଙ୍କ ।

ବାମଣ୍ତାଧ୍ୟ ପଣ୍ଡ ୧ । ୨ । ୩ । ୪ । ୫ । ୬ । ୭ । ୮ । ୯
୧୦ । ୧୧ । ୧୨ ।

ଉିକାଯୁକ୍ତବାବୁ ୧୩ । ୧୪ । ୧୫ । ୧୬ । ୧୭ । ୧୮ । ୧୯
୨୦ । ୨୧ । ୨୨ । ୨୩ । ୨୪ ।

ପଣ୍ଡାଯୁକ୍ତ ବାବୁ ୨୫ । ୨୬ । ୨୭ । ୨୮ । ୨୯ । ୩୦ । ୩୧
୩୨ । ୩୩ । ୩୪ । ୩୫ ।

ଜଳନ୍ଧର ଦେବ ୩୬ । ୩୭ । ୩୮ । ୩୯ ।

ପଣ୍ଡିତ ମଧୁସୂଦନମିଶ୍ର ୪୦ । ୪୧ । ୪୨ । ୪୩ । ୪୪ । ୪୫
୪୬ । ୪୭ । ୪୮ । ୪୯ । ୫୦ । ୫୧ । ୫୨ । ୫୩ । ୫୪

କାଶିନାଥ ଗ୍ରଜଂଗୁରୁ ୫୫ । ୫୬ । ୫୭ । ୫୮ । ୫୯ । ୬୦ ।
୬୧ । ୬୨ । ୬୩ ।

ବିଶ୍ୱନାଥ ମହାପାତ୍ରବିଦ୍ୟାଳଙ୍କାର ୬୪ । ୬୫ । ୬୬ । ୬୭
୬୮ । ୬୯ । ୭୦ । ୭୧ । ୭୨ । ୭୩ । ୭୪ । ୭୫ । ୭୬
୭୭ । ୭୮ । ୭୯ ।

ଭଗୀରଥୀ ରଥ ୮୦ । ୮୧ । ୮୨ । ୮୩ । ୮୪ । ୮୫ । ୮୬
୮୭ । ୮୮ । ୮୯ ।

ବ୍ରଜବନ୍ଧୁ ମିଶ୍ର ୯୦ । ୯୧ । ୯୨ ।

କାଳଚରଣ ବିଦ୍ୟାଭୂଷଣ ୯୩ । ୯୪ । ୯୫ ।

ସୋମନାଥ ଜ୍ୟୋତିଷାଳଙ୍କାର ୯୬ । ୯୭ । ୯୮ । ୯୯ ।

ଦୁର୍ଯ୍ୟୋଧନନାୟକ ୧୦୦ । ୧୦୧ । ୧୦୨ । ୧୦୩ । ୧୦୪

---

## ରାୟ ରାଧାନାଥରାୟ ବାହାଦୁରଙ୍କର ମନ୍ତବ୍ୟ ।

"ପୁସ୍ତକ ପ୍ରାପ୍ତିମାତ୍ରେ କେଉଁ ଶ୍ଳୋକର ଲେଖକ କିଏ ପ୍ରତ୍ୟେକ ସ୍ଥଳରେ ତାହା ସର୍ବାଗ୍ରେ ଚିହ୍ନିତ କରିନେଇ ପୁସ୍ତକ ଆମୂଳ ଚୂଳ ପାଠକଲି ।

ପୁସ୍ତକର ବିଷୟ ସଂପୂର୍ଣ୍ଣ କାବ୍ୟୋଚିତ ॥ ୧୬ ଜଣ ପଣ୍ଡିତ କବିଙ୍କର ଚମତ୍କାରତା ପୂର୍ଣ୍ଣ ଉକ୍ତିଗୁଡ଼ିକ ଏପରି ଭାବରେ ଗ୍ରଥିତ ହୋଇ ପ୍ରଚାରିତ ହେବାର ଉତ୍କଳ ସାହିତ୍ୟ ରାଜ୍ୟରେ ଗୋଟିଏ ଅଭିନବ ବ୍ୟାପାର ସନ୍ଦେହ ନାହିଁ ।"



# ଜହ୍ନମାମୁଁ ।

ରାଗ ଆଷାଢ଼ ଶୁକ୍ଳ ।

ଅମୃତ ସର ଦିଶଇ ମଞ୍ଜୁଳ । ମାମୁ ତହିଁରେ ଧଳକ ଫୁଲ ।
ଉଜ୍ଜ୍ୱଳ କୁମୁଦ ତାରା ସଂକୁଳ । ଗ୍ରହ ଗ୍ରାହରେ ହୋଇଛି ଆକୁଳ ।
ଚନ୍ଦ୍ରିକା ଲହରୀ ।
ଘନ ଘନ ତହିଁ ଅଛି ବହରି । ୧ ।

ମାମୁ ଅପଘନ ବଡ଼ଧବଳ । ଦୁଗ୍ଧ ଧାରା ପରି କିରଣ ଜାଲ ।
ହାଣ୍ଡିରେ ପଡ଼ି ଦିଶୁଛି ମଞ୍ଜୁଳ । ବାଳୁଡ ମାନେ ଆନନ୍ଦେ ଚଞ୍ଚଳ ।
ଦୁଗ୍ଧ ମନେ କରି ।
ଚାଟନ୍ତି ଅଛନ୍ତି ରସନା ପ୍ରସାରି । ୨ ।

ଦିନେ ଉପବନେ ଦେଖିଲି ଯାଇ । ଅତି ସରାଗରେ ଫୁଟିଛି ଜାଇ
ତୋଳିବାକୁ ମନ ହୋଇଲା ବାଇ । ସରବସ ହୋଇ ଗଲି ମୁଁ ଧାଇଁ
ଦେଖିଲି ଗଛର ।
କ୍ଷୁଦ୍ର ପଡ଼ିଛି ମାମୁର କର । ୩ ।

ମାମୁ ହୋଇଛନ୍ତି ସଂସାର-ପ୍ରଦୀପ । ପ୍ରକାଶ କରୁଛନ୍ତି ସପତ ଦ୍ୱୀପ ।
ଘୋର କରିଦେଲା ଅନ୍ଧାର ରାତି । ଛାଡ଼ି ଦେଇଥିବା ଦେହରୁ କାନ୍ତି
ରଜନୀ ସର୍ପିଣୀ ।
ମଥାମଣି ପରି ବର୍ଣ୍ଣେ ପୁଣି । ୪ ।

ହିରଣ୍ୟ ଗର୍ଭଙ୍କ ସୁବର୍ଣ୍ଣ ପିଠା ॥ କରିବ ବୋଲିଛ କାଞ୍ଚନ ଅଣ୍ଡା ।
ଚଳାଉଅଛୁ ମାମୁ ଗୁଲୁଣିରେ । ତହୁଁ ଚୁନାଗଲ ପଡେ ଧଡ଼ିରେ ।
ତାକୁ ଅମ୍ଭେମାନେ ।
ମାମୁ କରବୋଲି ଭାବୁଛୁ ମନେ । ୫ ।
"ବ୍ରହ୍ମାଣ୍ଡ ହାଣ୍ଡିରେ ଆକାଶ ପଣା । ତାରକାମାନେ ହୋଇଛନ୍ତି ଛେନା
ତହିଁରେ ମାମୁର ଅଧିକ ସାଚ । ଅଧେଗୋଲ ହୋଇ ଅଧେକ ଅଛି"
ଭୂଷାରେ ତାପିତ ।
ତପନ , କରେ ସେଉଛି ସନ୍ତତ । ୬ ।
ଦେଖ ମାମୁର କିରଣ ପ୍ରକାର । ହୋଇଛି କତକ ଗୁଣ୍ଡା ଆକାର ।
ଅନ୍ଧାର ମହା ସାଗରରେ ପଡ଼ି । ମଳିକ ଦେଉଛି ତଳକୁ ତଡ଼ି ।
ଛାଇ ଗାକ ମିଛ ।
ପଙ୍କ ଗୁଣ୍ଡାକ ବସିଛି ଦେଖୁଛୁ । ୭ ।
ଦେଖିଲ ମାମୁର କର କର୍ତ୍ତରୀ । ଆକାଶ କଳାକୁ ଦେଲା କତୁରି ।
ନାନାସ୍ଥାନେ ଘର ବୃକ୍ଷର ଛାଇ । ବୋଲନ୍ତି ଯେହୁ ଜଣ୍ଡପୃ ସେବାସ୍ତୀ
ଛାଣିଲ ଛାଣିଲ ।
ପଡୁଛି ତଳରେ ଆକାଶ ଛାଲ । ୮ ।
ଚନ୍ଦ୍ରିକା ପାଉଁଷ ବୋଲ ଦେହରେ । ତାରକା ଅସ୍ଥିଲମ୍ବାଇ ଗଳାରେ
କପାଳ କରି ଧରିଛି ମାମୁଙ୍କୁ । ତହିଁ ରଖିଛି ସିଦ୍ଧ ଅଞ୍ଜନକୁ ।
ରଜନୀ କାପାଳୀ ।
ଭ୍ରମୁଛି ଏଦ୍ୱୀପ ସେଦ୍ୱୀପ ମିଳି । ୯ ।

କେହୁ କେହୁ ଦେଖି ମାମୁ କଳଙ୍କ । କହୁଥାନ୍ତି ଏହା ସାଗର ପଙ୍କ ।
କେକହେ ଅଟନ୍ତି କୁରଙ୍ଗ ବର । ଭୂମିର ଛାଇବୋଲନ୍ତି ଅପର ।
ସବୁ ମିଛ ମାଳା ।
ଅମୃତ ହାଣ୍ଡିର ନଶ୍ଟସ୍ପୃ କଳା । ୧୦ ।

ଦିନେ ଟିଳୁଥିଲା ଗ୍ରନ୍ଥ ମାମୁଙ୍କ । ସେକାଳେ ମେଘ ଧାଉଁଛି ପୂର୍ବକୁ
କୁତୁହଳୀ ହୋଇ ଦେଖିଲ ଯାଇ। ହାଣୀପରି ଏକ କଳା ଛଲାଇ।
ଉଦ୍ଦେଶି ପ୍ରଣତୀ ।
ପିଠା ଗୋଟେ ଖୁବ୍ ପଳାଉଅଛି । ୧୧ ।

ପୂର୍ବ ଅଚଳେ ମାମୁ ଉଭାହୋଇ ॥ ଲହରୀ ସଦୃଶ୍ୟ କରବତାଇ ॥
କୁମୁଦ ଦଳ କବାଟ ପିଟାଇ । କର କାକର ଦିଅନ୍ତେ ଲଗାଇ ॥
ଚମକି ଉଠିଲା ॥
କୁମୁଦିନୀ ମନେ ମନେ ହସିଲା ॥ ୧୨ ॥

---

ସୂର୍ଯ୍ୟ ପରାଗଣ୍ଡରେ ଦେଖିଲ ଯାହା ॥ ମନକୁ ଆଶ୍ଚର୍ଯ୍ୟ ଲାଗୁଛି ତାହା ॥
ସୂର୍ଯ୍ୟ କାମୁକୁ ମାମୁ ଆବଡ଼ିଲା ॥ ପେଟ ଭ୍ରାନ୍ତିରେ ତେଜକୁ ଭରିଲା
ଏଣୁ କଗୋ ଆଇ ॥
କିରଣ ଛଳେ ତେଜ ଝୁଟିକଇ ॥ ୧୩ ॥

ମେଷ ରାଶିମଧ୍ୟେ ମାମୁ ରହୁଛି ॥ ସ୍ୱର୍ଣ୍ଣଥାଳ ପରି ଦେହ ଦିଶୁଛି ॥
ଆଜ ପିଦମ୍ଭୁଁ ମାରିକ୍ତାଙ୍କୁ ॥ ନତେ ଦେଇଦେବେ ମେଷପଲକୁ ॥
ଭାଇକାଲି ଯିବୁ ॥
କ୍ଷୀର ଗୋଟିଏ ଧେନ ଆସିବୁ ୧୪ ॥

କାଲ ମାମୁ ଥିବେ ବୃଷଭ ଘରେ । ଆମ୍ଭଙ୍କୁ ଦେଖିବେ ହନ୍ତା ମଧ୍ୟରେ
ତେଣୁ ସେ ସତ୍ୱରେ କରପ୍ରସାରି ॥ ଆମ୍ଭର ଭୟକୁ ନେବେତ ହରି ॥
ମାମୁଠାରୁ ବଳ ॥
ଆମ୍ଭଙ୍କୁ ଭଲବ କଏ ଗୁଆଲି ॥ ୧୫ ॥

ମୋ ମାମୁ ଗମନ୍ତେ ବୃଷ ରାଶିକୁ ॥ସଂସାରେ ବୋଇଲେ କଳଙ୍କୀତାକୁ
ଯେଣୁ ସେ ଗୋଟରେ ରହିଥିଲେ ॥ ଗଉଡ ପରି କର୍ମ ଆଚରିଲେ ।
ତେଣୁ ତାଙ୍କ ଦେହେ ।
ଗୋବର ଲାଗିଛି କଳଙ୍କ ନୁହେ । ୧୬ ॥

ସୁନ୍ଦର ରୂପକୁ ମାମୁ ଧରିଛୁ ॥ ହିଂସ୍ର ରାଶିମଧ୍ୟେ ସଦା ବୁଲୁଛି ॥
ସତାଇଶ ଦିନେ ବେଢ଼େ ବୁଲଇ । ସିଂହ ହସ୍ତ୍ରୀ ମକରରେ ରହଇ ॥
ମନା କରିବାକୁ ॥
ଯାଉଛୁ କହିବ ନନା ଆଉଙ୍କୁ ॥ ୧୭ ।

ସିଂହ ଖାଇଦେବ ହାତ୍ରୀ ଗୃହିବ । ଅବା ମଗର ମାମୁଙ୍କୁ ଗିଳିବ ॥
ଏହା ଭାଲସିନା ଡରଇ ମୁହିଁ ॥ ମାମୁ ବିନା ସୁଧା ପାଇବା କାହିଁ ॥
ଭାଇଭୁଛିସିବୁ ॥
ମୋର ସଙ୍ଗରେ ଆଈଙ୍କୁ କହିବୁ ॥ ୧୮ ॥

ଅନ୍ଧାର ପକ୍ଷରେ ମାମୁ ଛୁଡଇ । ଉଜ୍ଜଳ ପକ୍ଷରେ ପୁଣି ବଢଇ ।
ବଢିବା ଛୁଡବା ଆସ୍ପୃତ ନାହିଁ । ଯାହା କରୁଛନ୍ତି ବ୍ରହ୍ମାଣ୍ଡସାଇ ।
କହୁ ଅଛୁ ଶୁଣ ।
କହୁ ଯାଇଅଛୁ ଯାହା ବିଜ୍ଞାନ । ୧୯ ।

ଅଲାଭ ପର ମାମୁ ବୁଲବାରୁ । କେବେ ନୋହନ୍ତଏ କେବେବାସ୍ତୁ
ତପନ ପାଇଁ ତାହାଙ୍କ ବଡାଇ । ଅମୃପୃଥିବୀତ ଦିଏ ଘୋଡାଇ ।
ସେଯୋଗେ ଛୁଡଇ ।
ପୃଥିବୀ ଘୁଞ୍ଚିଲେ ପୁଣି ବଢ଼ଇ । ୨୦ ।

ମାମୁ ବାହାରିଲେ ଅନ୍ଧାର ଗଲା । ଛାୟାପଥ ଗଛ ପତ୍ର ଦିଶିଲା ॥
ପର ଉପକାର ଜଗତେ କର ॥ କଳଙ୍କୀ ହୋଇଲେ କଳଙ୍କ ବର ।
ଅନ୍ଧାର ପିଇଲେ ।
ବିଷପାନେ ହର ପର ହୋଇଲେ । ୨୧ ।

ବାରଘର ବୁଲା ମାମୁ ମୋହର । ବଡଲୋକ ଠାରେ ନୁହେଁସୁନ୍ଦର
ଯେଣୁ ସେ ଅମାପ ଲୋଭ ବୁଲନ୍ତୁ । ଆଜନୀନେ କାଲ କର୍କଟେ ଯାନ୍ତୁ
ହେବାରୁ ବ୍ରାହ୍ମଣ ।
କଳଙ୍କୀ ନାମ ହୋଇଛୁ ଶୋଭନ । ୨୨ ।

ମୋର ମାମୁ ସବୁଦିନେ ଶିକାରୀ । ଯେଣୁ ଧନୁରେ କ୍ଷୁଅନ୍ତୁ ଆଦରୀ
ଧନୁ ବ୍ରଣ କ୍ଷୀଣ କଠିନ ଦେହ । ଯୋଗୁଁ ବୋଲନ୍ତୁ କଳଙ୍କୀ ବିଗ୍ରହ
କ୍ଷତ୍ରିୟ ହେବାରୁ ।
ଦ୍ୱିଜରାଜ ନାମ ଅଛଇ ଗୁରୁ । ୨୩ ।

କ୍ଷତ୍ରିୟ ବଡମା ଯୋଗୁଁ ତାଙ୍କର । ଜନ୍ମିଲା ମନେ ବଡ ଅହଙ୍କାର ।
ଆପଣା ଗୌରବ ଭୁଲିବା ପାଇଁ । ଭୁଲିଗଲି ଠାକୁଗଲେ ଘୋଡାଇ ।
ସୂର୍ଯ୍ୟ ତହିଁ ଥିଲେ ।
ଉଣା ହେବାରୁ ପଲାଇ ଆସିଲେ । ୨୪ ।

---

ଜହ୍ନମାନଙ୍କୁ ହୋଇ ଅଗସ୍ତି ରବି ॥ ଅନ୍ଧାର ସିନ୍ଧୁକୁ ଦେବାକୁ ଶୋଷି ।
ନାନା ରତନ ତାରାପୁଞ୍ଜ ଛଳେ ॥ ପଡ଼ିଛି ଶୁଷ୍କ ବ୍ୟୋମ ଗର୍ଭସ୍ଥଳେ ॥
ସେହି କଳାଜଳ ॥
ଶୁଷ୍କ ଉଦରେ ଦିଶୁଛି କେବଳ ॥ ୧୫ ॥

ତାର ତଳରେ ତଳ ତମ୍ବୁଲତା ॥ ଲହରି ମାଳରେ ପଦ୍ମ ବନ୍ତ ॥
ପଦ୍ମା ଉପରେ ହରହାସ୍ୟ ସମ ॥ ଫୁଲେ କେଶର ପର ମନୋରମ ॥
ନାନା ରୂପ ମାମୁ ॥
ଧରୁଛୁ ସଦା କେତେ କହିବିମୁଁ ॥ ୧୬ ॥

ନନ୍ଦନ ବନ ମୃଗୟା କାଳରେ । କୁରଙ୍ଗ ପଳାଇ ସୁଧା–କାସାରେ ।
ପଡ଼ି ଭାସୁଅଛି ଦେଖ ବାଳକ । କାସାର ମାମୁ, କୁରଙ୍ଗ କଳଙ୍କ ।
ପଡ଼ିବାରୁ ଏକା ।
ସୁଧା ଉଛୁଳେ ନୁହେ ଏ ଚନ୍ଦ୍ରିକା । ୧୭।

ଗଗନ ଉଦ୍ୟାନ ସୁମନୋହର । ତହିଁ ତାରା ମଲ୍ଲି ଫୁଲ ନିକର ।
ସ୍ଥଳପଦ୍ମ ମଧ୍ୟେ ରୁଚିର ତର । ବାଳକେ ଦେଖ ସେ ମାମୁ ଆମ୍ଭର
ତାରମଧ୍ୟେ ନୀଳ ।
ଦିଶୁଛି ଯାହା ସେ ଭ୍ରମର କୁଳ । ୧୮ ।

ଦଧି ଶଉଡ଼ ଗଗନ ହାଣ୍ଡିରେ । ମାମୁଙ୍କୁ କରି ଦହି ଆନନ୍ଦରେ ।
ହଲକାରୁ ମୃତଆଡେ ଛିଟିକି । ନକ୍ଷତ୍ର ଛଳେ ନଭେ ପଡ଼ିଛି କି ।
ମଧ୍ୟେ କଳା ଦିଶେ ।
କାଳା ହୋଇ ଥିବା ଖୁଆଦଣ୍ଡ ସେ । ୧୯ ।

ନାଗେଶ୍ୱର ଲତାପତ୍ର ଗଗନ । କତ୍ରୟାକ ତାର ତାରକା ଗଣ
ଗୋଟିଏ ମାତ୍ର ପ୍ରଫୁଲ୍ଲିତ ଫୁଲ । ଆମ୍ଭର ମାମୁ ସେହିଟି କେବଳ ।
ଭ୍ରମର ନକର ।
ବସିବାରୁ କଳାହସେ କେଶର । ୩୦ ।

ଆମ୍ଭମାମୁ ସିନା ରଜନୀ ମୁଖ ॥ କଳଙ୍କ ନୁହଇ ତାର ତିଳକ ॥
ମେଘ ନୁହନ୍ତି ଏମୁକ୍ତ କୁନ୍ତଳ । ଚନ୍ଦ୍ରିକା ନୁହଇ ତାର ଦୁକୂଳ !
ପିନ୍ଧି ତାରା ମାଳ ।
ମହୀ ଗୃହପାଖ ଭ୍ରମେ କେବଳ । ୩୧ ।

ଦ୍ୱିଘଡ଼ି ରାତ୍ରେ ମାମୁ ଉପରେ ।କାବ୍ୟତାରା ଉଦେ ହେବା କାଳରେ
ବାରୁଣୀ ଯୋଷାର ବିଶାଳବେଣୀ ॥ ଚନ୍ଦ୍ର ଶିଖରର ସୁଷମା ଘେନି
ଝୁଲୁଅଛି ଅବା ।
କାଳ ନଭେ ମିଳେ ବେଣୀର ପ୍ରଭା । ୩୨ ॥

ଗଗନ ସାଗର ପରିସୁନ୍ଦର । ବୋଇତ ତହିଁ ନୀରଦ ନିକର ।
ତାରକା ମାନେ ନାବିକ ଅଟନ୍ତି । ବାତ କ୍ଷେପଣୀରେ ନାବ ବାହାନ୍ତି
ଉଦ୍‌ବାରଣ ପାଇଁ ।
ମାମୁଙ୍କୁ ଦ୍ୱୀପଘର କଲା ବିହି । ୩୩ ।

ଶୁଭ୍ର ସଭରେ ନାବ କେଲିରତ । ଦିଗଙ୍ଗନା କ୍ଷେପଣୀରେ ଉତ୍ଥିତ ।
ଛଟା ,ତାରକାପରି ଆଭାସଇ । ମାମୁ ଧବଳ ପଟ୍ଟିକା ଅଟଇ ।
ବାତେ ଆନ୍ଦୋଳିତ ।
ହୁଏ ପଟ୍ଟିକା ,କଳଙ୍କ ନଦିହେନ୍ତା । ୩୪ ।

ବ୍ୟୋମ ସର ଶୋଭା କମଳ ପରି । କେବା ବା ଅଗସ୍ତି କଉଁର ସିରି
କାହିଁ ବା ଉଜ୍ଜ୍ୱଳ ରୂପାଥାଳଟି । କେଉଁଠାରେ ଶୁଭ୍ର ଚନ୍ଦନ ଫାଟି –
ପଡ଼ି ମନୋହର ।
ମାମୁ ନାନା ରୂପେ ଦିଶେ ସୁନ୍ଦର । ୩୫ ।

ମୁଁ ସୁନ୍ଦର ତୁମ୍ଭେ ହୋଇଅଛ କଳା । ବୋଲି ବିଷ୍ଣୁଙ୍କୁ ମାମୁ ଟିହାଇଲା,
ତୋ ସୁନ୍ଦର ପଣ ଦେବି ଛଡ଼ାଇ । ସଳାବୋଲି କଳା ଦେଲେ ଲଗାଇ
ଅଦ୍ଭୁତ କୌତୁକ ।
ସେକଳା ନଛାଡେ ଜନମ ଯାକ । ୩୬ ।

ଅତ୍ୟନ୍ତ କୋମଳ ମାମୁ ଶରୀର । ଶୋଭୁଥିଲା ଭଜି ଶିବଙ୍କ ଶିର ।
ପ୍ରସ୍ରବଣ ପରି ସ୍ୱର୍ଗରୁ ଗଙ୍ଗା । ତାପରେ ପଡନ୍ତେ ହୋଇଲା ଭଙ୍ଗା ।
ନଜାଣି ଏକଥା ।
କଳଙ୍କୀ ବୋଲନ୍ତି ମାମୁଙ୍କୁ ବୃଥା । ୩୭ ।

ପୁଷପୂନ ରାତି ବଡ ଜାକର । ତେଣୁ ଶୀତେ ମାମୁ ହେଲା କାତର ।
ଖଣ୍ଡ ତାପିବାକୁ ବଳାଇ ମନ । ସିଂହ ରାଶିକୁ ଯାଆନ୍ତେ ବହନ ।
ସିଂହଙ୍କ ନୃବିଲା ।
ତେଣୁ ମାମୁ ଦେହ ପଟ୍ଟ ପଡ଼ିଲା । ୩୮ ।

ଆକାଶେ ଦିଶୁଛି ବିଜୁଳି ରେଖା । ଜହ୍ନ ମାମୁ କିପାଁ ନଦିଏ ଦେଖା ।
ଜାଣନ୍ତି ହେମାତା ଦାନ ନପୁଣା । ମାମୁ କପାଁ ହେବ ସେଗୁଣେ ଊଣା
ଥିଲା ଯାତାହାର ।
ଭିତର ଗୋପନେ କରେ ବିହାର । ୩୯ ।

ଆମ୍ଭ ମାମୁ ବିନା ତାରକା ସାଇଁ । ତାସମାନେ ପୁଣି ଆମ୍ଭର ମାଇଁ
ମାମୁ ଅସିବାରୁ ପ୍ରକାଶି ରହ । ମାଇଁମାନେ ପାଖୁଁ ଯାଅନ୍ତ ଘୁଞ୍ଚି
ହୋଇଛନ୍ତି ଉଚାଟ ।
ପଡ ପାଶେ ହୁଏ ପଡ଼ୀ ଲକ୍ଷିତ । ୪୦ ।

ମାମୁ ବଢ଼ାନ୍ତି ଖଟରେ ଶେଜ । ପାଶୁସ କରନ୍ତି ହାଣ୍ଡିରେ ପେଜ ।
ଖୋଷାରେ ଦେଉଛନ୍ତି ଫୁଲ ଭସାଇ । ଲୁଗାଇ ଦେଉଛନ୍ତି ସଙ୍ଖୀ ବଳାଇ
ବାହୁତ ସୁନ୍ଦର ।
କରି ଜାଣେ ଜନ୍ମମାମୁ ଆମ୍ଭର । ୪୧ ।

ଆମ୍ଭର ମାମୁଙ୍କି ବଡ ସୁନ୍ଦର । ଉଜ୍ଜ୍ୱଳ କରି ଦେଇଛନ୍ତି ସଂସାର ।
କଳା ଛଡ଼ପରି ଦିଶୁଛି ଯାହା । ମିଛିଗ କଳଙ୍କ ନୁହଇ ତାହା ।
ମୁହିଁ ବୁଝୁଛି ।
ମନ୍ଦାଚଳ ବାଜ ଘାଅ ହୋଇଛି । ୪୨ ।

ଉଦୟ ଗିରିରୁ ମାମୁ ବାହାରି । ପ୍ରଥମର ଦିଶେ କେଶରୀ ପରି ।
ପୁଣି ତାସପଥ ପାଖେ ପହଞ୍ଚି । ଗଗନ ଗଙ୍ଗା – ପୁଣ୍ଡରୀକ–ରଚ ।
କରୁଛି ବହନ ।
ଅସ୍ତ ବେଳେ ରୂପା ଚକି ସମାନ । ୪୩ ।

ତାସ ଆଭରଣ ରଜନୀ ଭର । କ୍ଷୀର ଥାଳିଟାଏ ମାମୁଙ୍କୁ କରି ।
ପୁରନ୍ଦର ପୁର କବାଟ ଖୋଲି । ବରୁଣ ଦିଗକୁ ଯାଉଛି ଚାଲି ।
କଳାଲୁଗା ତାର ।
ଘୁସୁରୁଛି ,ନୁହେ ଏହା ଅନ୍ଧାର । ୪୪ ।

କମଳ ଆବଳୀ ମାମୁ ଏମାନେ । ଜଳେ ଜାତହେବା ଯୋଗେ ସମାନେ
ଘଇ ହୋଇଛନ୍ତି ସେମଧ୍ୟେ ମାମୁ । ତେଜସ୍ୱୀ ହେବାରୁ କମଳଦମ୍ଭ ।
ଉଦ୍ଧାରି ଭାବରେ ।
ମାମୁର ତେଜକୁ ସହି ନପାରେ । ୪୫ ।
ଗଗନ ନୁହେ ଏନୀଳ ସାଗର ॥ ଗ୍ରହମାନେ ତହିଁ ବୋଇତ ସାର ।
ମାମୁ ହୋଇଛି ତହିଁ ବଣିଘର ॥ କଳଙ୍କ ନୁହେ ତାହା ଧୂଆଁଧାର ॥
କ୍ଷେପଣି ଚ୍ଛଲକ ॥
ପଡ଼ୁଛି ନୁହେ ଏ ହିମ ଗୁଡ଼ାଙ୍କ ॥ ୪୬ ॥
ତାସ୍ୱ ପଥ ସେତୁ ସମାନ ହୋଇ ॥ ଆକାଶ ସାଗର ମଧ୍ୟେ ଦଶଇ ॥
ତାସ୍ୱ ନୁହନ୍ତି ଏକେବଳ ସିପ ॥ ଜାତ ପଡ଼ ପଡ଼ ହେବାରୁ ଦ୍ୱିପ ॥
ଜ୍ଞଶଦ ଦିଶୁଛି ॥
ସେହି ସିପ ଗଦା ମାମୁ ହୋଇଛି ॥ ୪୭ ॥
ମାମୁ ହୋଇକରି ପାଉଁସ ମାଖି ॥ କଳା ଛାଲଖଣ୍ଡେ କାଖରେ ଜାକି ॥
ବସିକରି ତାସ୍ୱ କୁସୁମ ବଣେ ॥ ଯୋଗ ଶିଖାଉଛି ପଙ୍କଜ ବନେ ॥
ଯେଣୁ ସେ ପ୍ରଣବ ॥
କଳାମରି ଦିଶେ ପଦ୍ମ ସରବ ॥ ୪୮ ॥
ଅନ୍ଧାର ପକ୍ଷେ ବେଶି ତାରା ଥିଲେ । ଶୁକ୍ଳପକ୍ଷେ ଯାହା ଅଳ୍ପଦିଶିଲେ
ଏଣୁ ଅନ୍ୟୋଽନ୍ୟ ଆକର୍ଷଣବଳେ । ଧୀରେଧୀରେ ମିଳି ଗଲେ ସକଳେ
ହୋଇଲା ସେ ମାମୁ ।
ଦେବାକୁ ଧରିଛି ଅଣ୍ଟିରେ ଜାମୁ । ୪୯ ।

ସମୁଦ୍ରେ କାଲି ମାମୁ ବୁଡଥିଲା । ଆଜ ତହୁଁ ରୁ ବାହାର ଅଇଲା
ତେଣୁପଙ୍କ ଲାଗିଅଛି ଦେହରେ । ଓହାଯୋଗେ ତହୁଁ କାକର ଝରେ
ମାମୁ ସୂର୍ଯ୍ୟ କର ।
ତାପିବାରୁ ହସୁଅଛି ସୁନ୍ଦର ॥ ୫୦ ।
ଆମ୍ଭର ମାମୁ କେତେ ବଡ ଥିଲା । ଶିବ ଶିରେ ହପାଁ କ୍ଷୀଣହଶିଲା
ଏହା ଭଲ ଭଲ କଲ ମୁଣ୍ଡିର । ତାର ଦେହତ ଅତ ସୁକୁମାର ।
ଅଗ୍ନି ନେଇ ପାଖେ ।
ହନକୁ ହନ ଦୁଃଖେ ରହ ଶୁଖେ ।୫୧ ।
ଆମ୍ଭର ମାମୁତ ରାମ ଲକ୍ଷ୍ମଣ । ଋକ୍ଷ ବାହିନୀ ଚଲାଇ ବହନ ।
ତାରାପଥ ସେତୁ ଉପରେ ଚଢ଼ି । ଗଗନ ଜଲଧି ଲଙ୍ଘନ କରି ।
ଅନ୍ଧାର ରାବଣ ।
ନାଶି ଉଜ୍ଜ୍ୱଲ କଲେ ତ୍ରିଭୁବନ । ୫୨ ।
ଐରାବତ ଉଚ୍ଚୈଃ ଶ୍ରବା ଚନ୍ଦ୍ରମା । କୌସ୍ତୁଭ କଳ୍ପତରୁ ରମ୍ଭା ରମା
ସୋଦର ହେଲେସେ ଏହି ସକଳେ ।ଲକ୍ଷ୍ମୀମାତାଚନ୍ଦ୍ର ମାମୁଯା ହେଲେ
ତେଣୁ ମୁଁ କହଇ ।
ଶୁଣଥିଲେ ମାନ ମର୍ଯ୍ୟାଦା ପାଇ । ୫୩ ।
ମାମୁଙ୍କୁ କେବୋଲେବିରାଢ ନେଇ ।ଅତ୍ରି ନେତ୍ରମୂଳୁଁ କେବୋଲେ ଜାତ
କେବୋଲେକ୍ଷୀରଧି ମଧ୍ୟୁଁ ଉଥିତ । କେବୋଲେହିରଣ୍ୟ ଗର୍ଭଙ୍କ ଚାତ୍ର
ମୁହିଁ କହୁଅଛି ।
ସ୍ୱର୍ଗ ନନ୍ଦାର ପୁଲକ ଦିଗୁଛି । ୫୪ ।



ପୂର୍ବବାଟେ ତମ ଦୂର କରଣେ ॥ ଗୃହ୍ଣି ନିର୍ମ୍ମଳ କଲେଣି ଏକ୍ଷଣେ ॥
ଘୃତି କହିଲା ମାମୁ ଅସିବାର ॥ ଅଳ ଦୂର୍ଦ୍ଦ୍ଦନ ଯତ୍ନ କାସାର ॥
ପଦ୍ମନେତ୍ର ବୃନ୍ଦ ॥
ଦେଖିଲା କୁମୁଦ ନୟନେ ଶୋକ ॥ ୫୫ ॥

ଅନ୍ଧାର ଭୁଜଙ୍ଗ କରି ଖ୍ୟାତୀ ।ମଥାରୁ ମାମୁକୁ ବାହାର କରି ।
ପତଙ୍ଗ ଖାଇବା ପାଇଁ ରଖନ୍ତେ । ତାରା ପତଙ୍ଗେ ଧାଇଁଲେ ତୁରିତେ
ପଶ୍ଚିମରେ ଲୁଚି ।
ଗୋଟି ଗୋଟି କରି ସବୁ ଗିଳୁଛି । ୫୬ ।

ଆକାଶରେ ଲାଉ ଗଛ କଅଛି । ତାଗ୍ୱ ନୁହେ ତାର ଫୁଲ ଫୁଟିଛି ।
ଗୋଟିଏ ମାତ୍ର ଫଳ ମାମୁକସେ । ସୂର୍ଯ୍ୟ କିରଣେ ଝ୍କ ଝ୍କ ଦିଶେ ।
ପତ୍ରିଲ ଫୁଲଟି ।
ଗଛ ପତ୍ର ମହାଦେବେ ଦେବେଟି । ୫୭ ।

ଶୁକ୍ଳ ପାରା ବୃକ୍ଷ ଗଗନେ ଉଡ଼ି । ମାମୁ ବାଜନାଏ ତାହାଙ୍କୁ ତଡ଼ି ।
ରାତ ଅନ୍ଧାର ଜାଲକୁ ବେଢ଼ାଇ । ଚ୍ଚରଆଡେ ଜଗି ଜଗି ବୁଲଇ
ଶିକାର ତର୍କାରି ।
ଆଜ କରବ ଦେଖିବ କପରି ୫୮ ।

ଅମେରିକାକୁ ଗସ୍ତକରି ଗଲେ । ସୂର୍ଯ୍ୟ ତାଙ୍କ ଚୁର୍ଣ୍ଣି ମାମୁ ଧେଲେ
ଦ୍ବେଶୁହେଲେ ରାଜାଙ୍କୁ ଡାକଲେ କରି । କେତେକଛିଲେ ବୃକ୍ଷଜମିଦାର
ସୂର୍ଯ୍ୟ କରଯୀତା ।
ଅତ କଷ୍ଟକର ନୁହେ ସେ ଲୋତା । ୫୯ ।

ଏତେ କାଳେ ଆଦ୍ୟ ବରାହ ଏବେ । କ୍ଷୀର ସାଗରୁ ଉଠିଅଛେ ଜବେ
ତାଙ୍କ କଲଙ୍କ ପରାଏ ଦିଶଇ । ପୁନ୍ର ପୌତ୍ର ବୃକ୍ଷ ନାସିରେ ଥାଇ ।
ଅନ୍ଧକାର ଦୂର ।
ନିର୍ମୂଳ କରନ୍ତୁ ଏହି ସମ୍ଭବ । ୬୦ ।

ମାମୁ ସାଗର ଉପରେ ଆସୁଛି । ସୁନା ହୋଇ ଚନ୍ଦ୍ର ପର ଦିଶୁଛି ।
ଉପର କିରଣ ଶିମ୍ବ ଦଉଡ଼ । ଦିଶୁଛି ଆସିଲା ପରି ଦଉଡ଼ ।
ଆସ ଦେଖି ଯିବା ।
ଯାଇ ଖିଦ୍ର ଦେବ ସୁଖେ ପିନ୍ଧିବା । ୬୧ ।

ଆଉ ଗୋଟାଏତ ମାମୁ ନଥିଲା । ପାଣି ଭିତରକୁ କାହୁଁ ଅଇଲା
ଦେଖା ଯାଉଛି ସର୍ବ ଭାବେ ସମ । ଏହାର କେଉଁ ଭାଗ ନୁହେ କମ ।
ଏହାକୁ ନ ଜାଣି ।
ମାମୁ ଦୁଇଟା କମିତ ହେଲାଣି । ୬୨

ସମୁଦ୍ର ଧାର ଦିଶେ ଝଲମଲ । ସୂର୍ଯ୍ୟ କରେ ଅଭ୍ର ଭୂମିର ତୁଲ ।
ଅସ୍ତଗିରିଲେ ପଠାଇ କଛି । ଯାଇ ଦେଖାକ ଆମ୍ଭ ପାଇଁକି ।
ଆସ ପିନ୍ଧିଥିବା ।
ମାମୁ ଅଇଲେ ଯୁହାର କରି ବା । ୬୩ ।

ଦ୍ୱିତୀର ଅଛି ଏ ମାମୁ କେଶରୀ । ପୂର୍ବ ପର୍ବତ କନ୍ଦର ବାହାରି ।
ମୟୂଖ ନଖରେ ତମିର କରୀ । ଅତି କୋପେ ପକାଉଛି ବିଦାରି ।
ତା ନଖର ଗଳ ।
ପଡ଼ୁଛନ୍ତୁ କି ତାରା ମୁକ୍ତାବଳୀ । ୬୪ ।

ଅଥବା ଗଗନ ମଲ୍ଲି ଲତକା । ତାସ୍ତବକେ ଜନମାଇଁ କଳିକା ।
ମାମୁ କୁସୁମ ଙ୍କ ତହିଁରେ ଫୁଟି । ପ୍ରକାଶରେ ଦଶ ଦିଗ ଉଛୁଟି ।
କାଳଙ୍କ ଛଳରେ ।
ତହିଁ ମଧୁପ ମଧୁ ପାନକରେ । ୬୫ ।
ଆକାଶ ବଜାରେ କେଉଁ ବଣିକ । ପକାଇଛୁ ଅଳଙ୍କାର କେତେକ ।
ମାମୁ ଚନ୍ଦ୍ରଙ୍କ ଛଳେ ରତ୍ନ ପଦକ । ମୁକ୍ତାହାର ତହିଁ ନକ୍ଷତ୍ର ଯାକ ।
ରଖିବା ଇଚ୍ଛାରେ ।
ରାତି ନାରୀ ନୀଳପଟ ପ୍ରସାରେ । ୬୬ ।
ଆମ୍ଭମାମୁ ଅଟନ୍ତି ଦ୍ୱିଜରାଜ । ଚଢ଼ି ଅଛନ୍ତି କ ଗଗନ ଗଜ ।
କରେ ଅନ୍ଧକାର ମାନଙ୍କୁ ଭଙ୍ଗ । ଗିରି କନ୍ଦରରେ ଦଅନ୍ତି ମାଡ ।
ବେଢି ତାରାଗଣେ ।
ରହି ଅଛନ୍ତି କ ଅନୁସରଣେ । ୬୭ ।
ସ୍ୱର୍ଗ ସଉଧର ମାମୁ ଗବାକ୍ଷ । କରନ୍ତି ତହିଁ ଅପସରା ଲକ୍ଷ୍ୟ ।
ଇନ୍ଦୀବର ନୀଳ ନୟନ ମାଳା । ଗବାକ୍ଷ ବକ୍ଷରେ ଦଶଇ କଳା ।
ତାହାର ଚହଟ ।
କଳଙ୍କ ବୋଲି ହୋଇଛି ପ୍ରକଟ । ୬୮ ।
ଆକାଶ ନୁହେ ଏମହା ସାଗର । ମାମୁ ତନୁଶେଷ ଶେଜ ଆକାର ।
କଳଙ୍କ କପଟେ ମୁରାରି ତହିଁ । ଶୋଇ ଅଛନ୍ତି କ ନିଶ୍ଚିନ୍ତ ହୋଇ ।
ଏଣୁ ସବୁଲୋକ ॥
ଦେଖିବାକୁ ହେଉଥାନ୍ତି ଉତ୍ସୁକ । ୬୯ ।

ବିଧାତା ସୃଷ୍ଟି ଗୁରୁ କର୍ମ୍ମାରମ୍ଭ । କରନ୍ତ କାଳେ ଏଣ୍ଟ୍ରିକ କ୍ରମ୍ଭ ।
ବସାଇଅଛି ମାମୁ ଜନୁଙ୍କଲେ । ଦେଖାଯାଉ ଅଛି ନଭ ମଣ୍ଡଳେ ।
ପିମ୍ପୂଷରେ ପୂର୍ଣ୍ଣ ।
ହେବାରୁ ମନ କରାଏ ପ୍ରସନ୍ନ ।୭୦ ।
ମିହିର ହୋଇବେ ଅବଶ୍ୟ ଅସ୍ତ । ତମ ଲୋକଙ୍କୁ କରିଦେବ ଗ୍ରସ୍ତ ।
ଏହା ହୃଦୟର କଳଙ୍କ ଅପନ । ଖଣ୍ଡି ଚନ୍ଦ୍ରଙ୍କ ସ୍ଫଟିକ ଦୀପନ ।
ମାମୁର ଦେହକୁ ।
ଗୃହେଁ ଏଭାବ ଆସଇ ମନକୁ । ୭୧ ।
ଧାତା ଅଟଇ ଅତ କଉତୁକୀ । ରଖିବାକୁ ଲୋକ ଆଖି ପକ୍ଷୀଙ୍କ ।
ମାମୁ ଦେହ ବ୍ୟାଜେ ରୂପା ପଞ୍ଜୁରୀ । କେତେ ଯତ୍ନ କରିଅଛି ଭଆର
କଳଙ୍କ କବାଟ ।
ପକାଇ ବନ୍ଦକରିଛି କବାଟ । ୭୨ ।
ଭୁବନ ଦର୍ଶନ କଉତୁକରେ । ଇନ୍ଦ୍ରାଣୀ ବୁଲୁଥିଲେ ଗଗନରେ ।
ତାଙ୍କ କାନରୁ କ ରତନ କାପ ପଡ଼ି ମାମୁଙ୍କଲେ ଦେଖାଏ ରୂପ ।
ସୁନ୍ଦର ଶୋଭେ ।
ରାହୁ ତସ୍କର ନେବ ପରା ଲୋଭେ । ୭୩ ।
ମାମୁଙ୍କ ବାସବ ସୁଧା ମନ୍ଦିର । ତହିଁ ପଶିବାକୁ ଚକୋର ଚେର ।
ସିନ୍ଧି ଗାତଙ୍କ ତହିଁରେ ଫିଟାଇ । କରଣ ସ୍ୱପ୍ନତିଙ୍କ ନେଲେ ବନ୍ଧ ।
ଏଣୁ ସେହି କଳା ॥
କଳ ମାନଙ୍କୁତ ଦିଶୁଛି କଳା । ୭୪ ।

ଅମ୍ବରେ ସ୍ୱର୍ଗ ଜଳେ ରଣ ଭଣ । ତାଙ୍କ ସହିତ କରିବାକୁ ରଣ ।
ଚନ୍ଦ୍ରଙ୍କ ଥୋଇଛି ହିଗ୍ରବଦାଉ । ନକ୍ଷତ୍ରମଣ୍ଡଳେ ଦିଶେ ଦାଉ ଦାଉ ।
ମାମୁର ତନୁକୁ ।
ଏହିପରି ଆସୁଅଛି ମନକୁ । ୬୫ ।

କିବା ମାମୁ ତନୁ ଚନ୍ଦ୍ରବାଣକୁ । ଲଗାଇ ଥରଛି ଅଙ୍କେ ଦଣ୍ଡକୁ ।
ଭୁଲିବାରୁ ତହିଁ ଅନଳ କଣା । ବାହାର ମଣ୍ଡଳେ ଗଗନାଙ୍ଗଣା ।
ସେ ନୁହନ୍ତ ତାରା ।
ଦୂରରୁ ଦଗୁଅଛନ୍ତକ ତୋଗ । ୬୬ ।

ଅପସରା ମାନେ ହେବାକୁ ବେଶ । ନଭଉଦ୍ୟାନୁ କ ତୋଳଲେ ପୁଷ୍ପ
ମଧ୍ୟରେ ମାମୁ ଚଙ୍ଗୁଡିକ ଥୋଇ । ସବୁଫୁଲ ତହିଁ ଦେଲେ ଜମାଇଁ
ତହିଁ ମକରନ୍ଦ ।
କାକରଛଳେ ପଡେ ମନ୍ଦ ମନ୍ଦ । ୬୭ ।

କିଅବା ଦ୍ୟୁ ଜଳ ଯନ୍ତ୍ରଘର । କରଛିକ ମାମୁ ଛଳେ ଭିଆର ।
କଳଙ୍କ ନୁହେ ସେ ତାର ଦୁଆର । ପବନ ତହିଁରେ କରେ ଝଙ୍କାର
ସେ ପବନ ବଳେ ।
ଜଳକଣା ଆସି ପଡୁଛି ତଳେ । ୬୮ ।

ନଶା ନାରୀକ ଜୁଡା ପକାଇଛି । ତା ଚାରପାଖେ ମଲ ବେଢ଼ାଇଛି ।
ତାକୁ ମାମୁବୋଲି ଭାବୁଛି ମନ । ନଭ ଦେଶରେ କରୁଛି ଗମନ
ଜୁଡା ଅଗ୍ରଭାଗ ।
ଦୂରରୁ ଦିଶୁଛି ନୋହେ ସେ ମୃଗ । ୬୯ ।

ମାମୁ ସବୁଦିନେ ତମକୁ ଡକେ । ସେତମ ରହିଛୁ ଭୂଗୋଳ ଅଟେ ।
ଲୁଚିଅଛ ଧରି ଆକାଶ ଜନ୍ମ ' ଦେଖୁଅଛ ତାର ଗତି ପଦବୀ
ପଢ଼ଲେ ହାବୁଡେ ।
ମାମୁଙ୍କୁ ନକଲ କରି ହାମୁଡେ । ୮୦ ।

ମାମୁର ନୂପଦେ ନକ୍ଷତ୍ର ରାଶି । ଯାହା ହେବା ଥାଉ ,ଦିଅନ୍ତୁ ହସି ।
ଏଣୁ କଃସହାଯ୍ୟେ ଦ୍ୱୀପୁଁ ଦ୍ୱୀପକୁ । କର ଭଗ୍ନଦେଇ ଯାଏଁ ଆଗକୁ ।
ଧକାଇ ଚହଲ ।
ଯାଉଁଛ ପଲ୍ଟେ ସାଗର କଲ୍ଲୋଳ । ୮୧ ।

ଉପ୍ରେ ଆମ୍ଭମାମୁ କଡ ବୁଲାଇ । ଧରଣୀ ବଦନ ଦେଖଇ ନାହିଁ ।
ଅହା କସୁନ୍ଦର ଅପର ପାଖ । ଗ୍ୱାଢ଼ ଗ୍ୱହ୍ମୁର ଲାଗିନାହିଁ ମୁଖ ।
ଦେବ ଯୋଗ୍ୟ ଛନ୍ଦ ।
ମାନବ ଭାଗ୍ୟକୁ କାହିଁ ସମ୍ଭବ । ୮୨ ।

ଅନ୍ଧାର ପକ୍ଷରେ ନଖାଇ ଖରା । ଶୀତେ ମାମୁ ଦେହ ଶୁଖଇ ପରା ।
କିଅବା ଶୀତଳ ଅମୃତ ଦେଖି । ସକଳ ତାରାଏ ପକାନ୍ତୁ ଚିଖି ।
ନୋହିଲେ କାହିଁ କି ।
ଅମାବାସ୍ୟାରେ ଧରନ୍ତୁ ରହିଙ୍କି । ୮୩ ।

ମାମୁତ ଆମ୍ଭର ନୁହଇ ଉଣା । ଶରଣ ପଶି ଲଭନ୍ତେ କରୁଣା ।
ଶୁକ୍ଳ ପ୍ରତିପ ତଥିରୁ ଉଠି । କେତେ ତାରା ଦେଲା ଆକାଶୁଁ ଖୁଣ୍ଟି
ଖାଲିଥିବା ପେଟ ।
ହନକୁ ହନ ହକ୍ଷିଗଲା ମୋଟ । ୮୪ ।

ଏବେ ମାମୁର ସେ ମୋଟ ଉଦର । ଚକାବୋଇତ କଥାରୁ ସୁନ୍ଦର ।
କେବଳ ରହିଲା କେତେକ ଫାଙ୍କ । ଆମ୍ଭର ଆଖିକୁ ଦିଶେ କଳଙ୍କ ।
ମାଗିବ ମାମୁଙ୍କୁ ।
କୁମାର ଉଙ୍କିବ ପାଟ କାଛକୁ । ୮୫ ।

ସବୁଠାରୁ ମାମୁ ଗୋଲକ ତୋଗ୍ । ସହିତ ନପାରଏ ଥଗ୍ ପର୍ଗ୍ ।
ଫୁଲା ଉଠୁ ନୀଳ ସାଗର ସ୍ଫାତ । କଲ୍ଲୋଳ କରକୁ ଆକାଶ ପାତ ।
ସମୁଦ୍ର ଗର୍ଜନ ।
ଛୁଲେ ଥାଇଁ ଅଛୁ ବାର ତର୍ଜନ । ୮୬ ।

ବିଜ୍ଞାନ ମତରେ ମାମୁ ଆମ୍ଭର । ଧରଣୀ ରାଣୀର ଏକ କୁମର ।
କିନ୍ତୁ ଏଭାବ ଆସୁଛି ମନକୁ । ଯୋବ ଫର ଫର ଦେଖିଲା ବୁଝୁ ।
କ୍ଷୀରଧି ଅଭାବ ।
ମାମୁ ଜନମର କାରଣ ଭାବ । ୮୭ ।

ମାମୁ ଆକର୍ଷଣେ କୁଆର ଭଟା । କୁହାଯାଇ ପାରେ ଲୋକେ ଏହିଟା
କେବେ ଆନନ୍ଦ କେବେ ବା ବିଷାଦ । ଆନ୍ଦୋଳିତ କରେ ସାଗର ହୃଦ
କଲା ସୁଖ ଦୁଃଖେ ।
ଭାବୁକ ଭାବ ଏଭାବକୁ ଦେଖେ । ୮୮ ।

ଦେଖ ମାମୁର ସାଗର ସରଧା । କଇଁ ହୃଦେ ଦେଇ ବିଚ୍ଛେଦ ବାଧା
ସମୁଦ୍ର ବକ୍ଷରେ ସୁଖେ ସନ୍ତରେ । କମଳାକର କମଳ ଆକାରେ ।
ହୁଁତେଯେ କାକର ।
ଔଷଧି ପ୍ରଜା ଲୋତକ ନିକର । ୮୯ ।

ଶିଶୁ କୋଳେ ଯେନ ମାମୁଙ୍କୁ ମାଆ । ତାଙ୍କେ "ଜହ୍ନମାମୁ ଆ ଅରେ ଆଆ
ମୋ କାହ୍ନୁ ହାତରେ ପଡ଼ ବହନ । କପାଳରେ ଦେବୁ ଟୋପି ଚନ୍ଦନ
ହସିବ ମୋ ଧନ ।"
ତୋଷେ ମାମୁ ସିନା ବାଳକ ମନ । ୧୦ ।

କଳଙ୍କ ବୋଲିବା ମାମୁ ଚନ୍ଦ୍ରଙ୍କୁ । କଥାଟି ନଆସେ ମୋର ମନକୁ ।
ମାମୁଙ୍କ ଅଟଇ ସୁଧା ସଦନ । ଫୁଟି ଦିଶୁଅଛୁ ତୁରଙ୍କା ଗଣ ॥
କଳଙ୍କ ନୁହେଁଟି ।
କାଳିଆ ରଙ୍ଗର କବାଟି ସେଟି । ୧୧ ।

ଏମାମୁ ତୋଷଇ ଚକୋର ମନ । ଖେଳାଏ ସାଗରେ ଲହରୀ ଗଣ ।
ଗଛରେ ଔଷଧ ଦିଏ ଲଗାଇ । ମାଆ ଲକ୍ଷ୍ମୀଙ୍କର ଅଟଇ ଭାଇ ।
ସଂସାର ଭିତରେ ।
କିଏ ସେ ସମାନ ମାମୁଙ୍କ ସଙ୍ଗରେ । ୧୨ ।

---

ଗଗନ ବିତାନ ହୋଇ ବିତାନ । କରୁଛୁ ଜନଙ୍କୁ ଆନନ୍ଦ ଦାନ ।
ମୁକ୍ତା ଗୁଚ୍ଛରେ ହୋଇ ଅଛୁ ଘନ । ମଧ୍ୟେ ଜଳ ଜଳ ଦିଶେ ଦର୍ପଣ
ଏଟି ମାମୁ ଜାଣ ।
ଆମ୍ଭମାନଙ୍କର ଜୀବନ ଧନ । ୧୩ ।

ଆକାଶରେ ଦେବସଭା ବସିଛି । "ବୈଦ୍ୟୁତିକ ଆଲୋ" ମାମୁ ହୋଇଛି
ସେହି ଆଲୋ କରେ ପୃଥିବୀମାଏ । ଉଜ୍ଜ୍ୱଳ ହୋଇ କେଡେ ଶୋଭାପାଏ
ମଧ୍ୟେ ଜଳା ଦିଶେ ।
ଆଲୋକ ମୁଗ୍ଧ ପତଙ୍ଗ ମାଳ ସେ । ୧୪ ।

ଦେଖ ଆକାଶେ ବହୁଯ୍ୟ ମଣ୍ଡଳ । ତାଙ୍କ କାନରେ ଝୁଲୁଛି କୁଣ୍ଡଳ
ହିରା ଜଡ଼ିତ ନୁଗାରେ ସୁସଜ୍ଜ । ମଧ୍ୟରେ ଇନ୍ଦ୍ର, ଶିରେ ଶିରପେଞ୍ଚ ।
ମାମୁ ସେ ଆମ୍ଭର ।
ଆମ୍ଭଙ୍କୁ ନେବାକୁ ପ୍ରସାରେ କର । ୧୫ ।

---

ମାମୁ ମଣ୍ଡଳର ମଧ୍ୟଭାଗରେ । ରାହୁ ରାକ୍ଷସ ଲୁଚିଥାଏ ଡରେ ।
ଭୂଚ୍ଛାୟା ସଙ୍ଗକୁ ପାଇଲା ଯହୁଁ । ମାମୁ ମଣ୍ଡଳକୁ ଗିଳିଲା ତହୁଁ
ଅଟେ ବରଷ ॥
ଏଗାର ଦିନ କ୍ରମରେ ତାତ୍ରାସ ॥ ୧୬ ॥
କ୍ଷୁଧାତୁରେ ନଭୋବନ ସଞ୍ଚାରୀ । ମାମୁ ହିଁ ହ ପ୍ରାଚୀ ଦ୍ୱାରୁଁ ବାହାରି ।
ଦେଖିଲେ ତମୋ ବହ୍ନିକୁ ଆଗେ । ମାମୁ ତାକୁ ଅକର୍ଷିଲେ ସବେଗେ
ଗଗନ ବନରେ ।
ନଖାଇ ଖାଇବେ ଅସ୍ତାଚଳରେ । ୧୭ ।
ଆଉ ଗୋଟାଏ ବଡ଼ମାମୁ ଅଛି । ପ୍ରଖର ଅଗ୍ନି ଜ୍ୱାଳାରେ ଦହୁଛି ।
ତାର ଉପତାପ ଶାନ୍ତ ନମିତ । ମାମୁ ଚ୍ଛେକେ ତାକୁ ହୋଇ ଅଧସ୍ଥ ।
ଆମୃଶାନ୍ତ ପାଇଁ ।
ସୂର୍ଯ୍ୟ ଉପରାଗ ଯାହାକୁ କହି । ୧୮ ।
ବ୍ରହ୍ମାଣ୍ଡ ତାଇରେ ଚନ୍ଦ୍ରିକା ଘୃତ । ଅ ଗାଢ଼ ଦିଅଇ ରଜନୀ ମାତା ।
ମାମୁ ମଣ୍ଡଳ ସୁଆଁଇ ଯହିଁରେ । ତାରକ ପୁଞ୍ଜ ମୁଗିଆ ତହିଁରେ
ଛାଣିକରି ନେଲେ ।
ଅସ୍ତାଚଳ ଯକ୍ଷ ମୁଖରେ ଦେଲେ । ୧୯

ଦରପଣ ପର ସଦା ନିର୍ମଳ । ଅଛଇ ମାମୁର ଦେହ ମଣ୍ଡଳ ।
ଦେଖାନ୍ତି ଶୋଭା ଦେବୀ ଜନ୍ତୁ ମୁଖ । ମୁଖପ୍ରତି ବିମ୍ବେ ମାମୁ-ମୟୁଖ

ମିଶି ଯାଉଅଛି ।

କଲାତୋଳା ଛାଇପରି ଦଶୁଛି । ୧୦୦ ।

ପୁଧା ପିଠାଉ ନଭପାନେ ଭାଲ । ବିଧାତା କରଛି ସବୁତକ୍ଲଳ ।
ତକ୍ଲଳ ଦେହେ ଛିଦ୍ରଥାଏ ଯଥା । ମାମୁ ତକ୍ଲଳ ଦେହ ଛିଦ୍ରଥା ।

ଦୁରକୁ ମଳନ ।

ଦଶନ୍ତି ନୁହେ ତା କଳଙ୍କ ଚନ୍ଦ୍ର । ୧୦୧ ।

ତାରକା ଜରଫୁଲ ଫୁଟିଥିବା । ଆକାଶ ଝୁଲ କସାହୋଇ ଅବା ।
ରାଣୀ ହସ୍ତିନୀ ବୁଲିବାର ତାର । କ୍ଷୁଦ୍ର ଦଶନ୍ତି ଦଶେ ମନୋହର ।

ଦ୍ୱୀପସ୍ଥ ତଥିରେ ।

ତାହାକୁ ମାମୁ ବୋଲନ୍ତି ଧର୍ତ୍ତରେ । ୧୦୨ ।

ବିଧାତା ସମସ୍ତ ଜାଣିବାପାଇଁ । ନଭପ୍ରାଙ୍ଗଣେ ଦେଇଛି ଝୁଲାଇ ।
ସୁନାଘଡ ଛାୟା ପଥତେନରେ । ତାହାକୁ ମାମୁ ବୋଲନ୍ତି ସଂସାରେ

ତାଶଡକୁ ଧର ।

ଗତିରେ ସମସ୍ତ ହୁଅଇ ବାର । ୧୦୩ ।

ଆକାଶବନେ ମାମୁଙ୍କ ହୃଦର । ଖାଉଛୁ ମାମୁ ଅନ୍ଧକାର କଣ୍ଟା ।
ସେଥିରୁ ତାର ପେଟେ ହୋଇ ଜମା । ବାହାରକୁ ଦଶୁଅଛୁ କାଳିମା

ନବୁଝି ତା ଲୋକେ ।

ବୋଲନ୍ତି ଶଶ ଅଛୁ ମାମୁଅଙ୍କେ । ୧୦୪ ।